ମାତୃଭୂମି ଗ୍ରନ୍ଥମାଳା—୯ମ ଅବଦାନ ।

# ଚୈତ୍ର - ଗାଥା

ନରସିଂହ ଦେବ

ମାତୃସେବା ଗ୍ରନ୍ଥମାଳା — ୯ମ ଅବଦାନ

# ଚୈତ୍ର - ଗାଥା



ନରସିଂହ ଦେଓ



ଦେଶର

ଭବିଷ୍ୟତ ବଂଶଗୌରବ

ଛାତ୍ରୀ ଓ ଛାତ୍ର ସମାଜ

ହାତରେ

# ସୂଚନା

ଶତାବ୍ଦ ୮୦୩ରେ ଚକ୍ରିଟୀ ରାଜ୍ୟର ପ୍ରତିଷ୍ଠା । ପ୍ରଥମ ରାଜା କେଶବ ରାଜଚନ୍ଦ୍ର ଏ ରାଜ୍ୟର ସର୍ବ ପ୍ରଥମ ପ୍ରତିଷ୍ଠାତା । ସେ ଗଜପତି ମହାରାଜାଙ୍କର କରଦ ରାଜାରୂପେ ସେହି ଦିନୁ ରାଜତ୍ୱ କଲେ ଓ ସେହି ଦିନୁ ଏ ଦେଶରେ ବୁଣିଦେଇ ଗଲେ କଳା ଓ ଭବତାର ମହିମାମୟ ବୀଜ । ଜଙ୍ଗଲ, ଜଙ୍ଗଲରେ ପୁଷ୍ପ, ପୁଷ୍ପରେ ଶ୍ରୀ ଜଗନ୍ନାଥ ଓ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଜଙ୍ଗଲ ସଭ୍ୟତା ଓ ସଂସ୍କୃତିର ଗୋଟିଏ ଜ୍ୱଳନ୍ତ ପରମ୍ପରା ଓ ପରାକାଷ୍ଠା । ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ର କରି ଏ ଦେଶର ସଂସ୍କୃତି ଗଢ଼ି ଉଠିଛି । ଶ୍ରୀ ଜଗନ୍ନାଥଙ୍କ କଳାପୂର୍ଣ୍ଣ ପ୍ରତିମୂର୍ତ୍ତି ପୁଣି ସେହି ଭାବମୟ ପ୍ରତିମୂର୍ତ୍ତିଙ୍କୁ ସଂରକ୍ଷିତ କରିଛି ଏତେ ବଡ଼ କାରୁକାର୍ଯ୍ୟ ମଣ୍ଡିତ ସମୁଚ୍ଚ ଦେବାଳୟ । ଏହା ଭିତରେ ଯେ କେତେ ବିରାଟ ଭାବଧାରା, ମତବାଦ, ଧର୍ମ, ବୈଚିତ୍ର୍ୟ ବିଦ୍ୟମାନ ତାହା କଳନା କରିବା ଦୁରୂହ ବ୍ୟାପାର ।

ଏହି ମହନୀୟ ଜଙ୍ଗଲ ଭିତରେ ଚକ୍ରିଟୀ, ଚକ୍ରିଟୀର ରଥଯାତ୍ରା ଓ ସେହି ରଥଯାତ୍ରାରେ କାବ୍ୟକଳା ଜଗନ୍ନାଥ ପୁଣି ସେହି କାବ୍ୟକଳା ଜଗନ୍ନାଥ ସଂସ୍କୃତି ଏକ ଅନବଦ୍ୟ ଅବଦାନ । ସେହି ଜଗନ୍ନାଥଙ୍କର ସାହିତ୍ୟ-ସଂହିତ ରଥରୁ ନିଜର କାବ୍ୟ-କବିତା ରଜ୍ଜୁରେ କବି ଓ କଳାକାର ଦଳ ଟାଣୁଛନ୍ତି, ରଥ ଚାଲୁଛି ଓ ଥୋକେ କଳାକାର ରଥ ଉପରେ ରହି କଳା ଜଗନ୍ନାଥଙ୍କର ପୂଜା ଧାମରେ ବି ବ୍ୟସ୍ତ । ଏହି କଳ୍ପନା ହିଁ "ଜୈବ-ଗାଥା"ର ବର୍ଣ୍ଣନୀୟ

ବପୁ । ଏହି କଳା ଜଗନ୍ନାଥଙ୍କ ଦ୍ୱାରା ହିଁ ଚିକିଟୀ ଉତ୍କଳରେ ଲୋକଲୋଚନ ଦୃଷ୍ଟି ଆକର୍ଷଣ କରିପାରିଅଛି ।

ନାଟ୍ୟ ମଣ୍ଡପର ଯବନିକା ଉନ୍ମୋଚନ ପରେ ଯେପରି ଦୃଶ୍ୟ ପରେ ଦୃଶ୍ୟ ନୟନସୁଖ ମୁଗ୍ଧ କରିଦିଏ ସେହିପରି ଚିକିଟୀର କଳାମଣ୍ଡଳ ପ୍ରତି ଅନ୍ତର୍ନିହିତ ଦୃଷ୍ଟି ଦେଲେ ଅଗଣନ କଳାକାର କବି ସମୂହ ଏକେ ଏକେ ମନନୟନ ଆଗରେ ଉଦ୍‌ଭାସିତ ହୁଅନ୍ତି ।

ଏଣୁ କବି ଓ କଳାକାରଙ୍କ ଜନ୍ମ-ଜନ୍ମକାର ଚର୍ଚ୍ଚିତ ଏହି ଧୂଳିକଣିକି ଆମମାନଙ୍କର ଭାବୀ ବଂଶଧର ଯୁବଗୋଷ୍ଠୀଙ୍କ ହାତରେ ଦେବା ହେଉ ସେମାନେ ନିଜର ଅତୀତ ପୂର୍ବ ପୁରୁଷଙ୍କୁ ଚିହ୍ନି ନିଜର କର୍ତ୍ତବ୍ୟ ପଥରେ ଅଗ୍ରସର ହେବେ ଏହାହିଁ କାମନା ।

ଭରତା କୁଟୀର
ଚିକିଟୀ
୧୪-୩-୬୮, ଦୋଳ ପୂର୍ଣ୍ଣିମା

**ଲେଖକ**

# ଚକ୍ରି ଶ - ଗାଥା



ଚର ବୃନ୍ଦ କଳା କୁଞ୍ଜ                ଶ୍ରେଷ୍ଠ କଳାକାର ପୁଞ୍ଜ
ଭ୍ରମର ଭ୍ରମଣ ଗୁଞ୍ଜ ମାନସ ହାସ,
ନିପାରୁଣେ ଶୋଭାବଳୀ                ଉଷ ଅଧର କାକଳୀ
"କଇଁ ଫୁଲ", "ରୂପିଦର୍ଶୀ" ବାଳକୁମାରୀ,
କାବ୍ୟ କବ କନ୍ୟା ଚକ୍ରି ଶୀ
ଜନକନ ଭରଭୂଷା ବାଣୀ କଣ୍ଠୀ । ୧ ।

"ବାନ୍ଧବା", "ବଗୀ" ମଣ୍ଡିତ                ଏ ଦେଶ ଚିର ଲଳିତ
କୃଷକ କର୍ଷଣ ସ୍ୱରେ "କଳଙ୍କ ଦଳା"
ସ୍ମରଣ ହାର ସମାନ                ଜନ ଭଣ୍ଡାର ନିର୍ମାଣ
ବଭୂଷଣ ଉଦ୍ୟାନ କଟି ମେଖଳା
ଆଶୀଷେ ବାସନ୍ତୀ, କୁଠାରୀ,
କୁବଳୟା, ରତ୍ନନେଇ; ବାଙ୍କ ଇଷୁରୀ ! ୨ ।

ସାହିତ୍ୟ ସଂହତି ରଥେ                କାବ୍ୟ ଜଗନ୍ନାଥ ପଥେ
ଗତିଶୀଳ ଅନ୍ତରରେ ଦିବ୍ୟ ଆଲୋକ
ସାଙ୍ଗଲିନ୍ ପଦ୍ମମଣି                ଅଳଙ୍କାର ରତ୍ନ ଭଣି
ପାରନ୍ତି ରୂପେ ଅଗ୍ରଣୀ ସ୍ୱର ବୃନ୍ଦକ
"କବି କଳ୍ପ ଦ୍ରୁମ" ଲେଖକ
ନମେ ଆଜ ମାତୃ ଦେଶ ଭର ଜୋହକ । ୩ ।





କୃଷ୍ଣଚନ୍ଦ୍ର ନରପତି "ଆର୍ଷ ରାମାୟଣ" ରଚି
"ରାମଲୀଳା" ରାମ ଭକ୍ତିଧାର ପୀୟୂଷ
ରଚି ରଚିଥି ପୂଜା ମନ୍ତ୍ର ବାଛ ଦେଲେ ଗୀତା ଯନ୍ତ୍ର
ନନ୍ଦଘୋଷ କାବ୍ୟଚନ୍ଦ୍ର ଚିର ଆୟୁଷ
ବିଶ୍ୱମ୍ଭର କବି ପ୍ରବର,
"ଶରଦ" "ବସନ୍ତ-ରାସ" ଭୃଙ୍ଗ ଝଙ୍କାର । ୪ ।

ଚଣ୍ଡୋପରା ସହଚର ଚୂଡ଼ାପଣ୍ଡା, କବିବର
ସଙ୍ଗେ ରତ୍ନ ନିରନ୍ତର ଘଣ୍ଟ ନିନାଦ
ଜନ୍ମିଲେ "ଉଷା ବିଳାସ" "ରଘୁନାଥ" "ଗାନ" "ରାସ"
"ଅଠରୁଳଣି-ଚାନ୍ଦ" ହାସ କାବ୍ୟ ଆସ୍ୱାଦ
"ଯାନନ୍ଦ-ବିଳାପ"ର କବି,
ପୀତାମ୍ବର ଭ୍ରମରର ସଙ୍ଗୀତ ରବି । ୫ ।

ନରେନ୍ଦ୍ର, ଲୋକନାଥ, ଭଞ୍ଜ କାବ୍ୟେ ସଦା ସ୍ନାତ
ରତନ ଦାରୋଗା ଗୀତ ଭ୍ରମର ଗୁଞ୍ଜ
"ଏ ନବ ଯୌବନ ମୋର କେତେ ଦିନ ଆଳେ" ସୁର-
ରସ ସରେ ଜରଜର ରସ ନିକୁଞ୍ଜ
ଗାଇ ସଦା ନିତ୍ୟ ଆନନ୍ଦ,
ସୁଚ୍ଛନ୍ଦ ସଙ୍ଗୀତ ଗାନ ମଧୁର ଛନ୍ଦ । ୬ ।





ଲକ୍ଷ୍ମୀ ଚଉକର ଶ୍ରେଷ୍ଠ- ପଢ଼ିଛା ସ୍ୱଗୁଣେ ଜ୍ୟେଷ୍ଠ
କାବ୍ୟ କଳା ପୂଜାନ୍ତୁ ଭୁବର ଆଜ
ନାନା ରଙ୍ଗ ଚଇ ଖଞ୍ଜି ଲକ୍ଷଣ ରୂପଶ୍ରୀ ରଞ୍ଜି
ଇନ୍ଦ୍ରଧନୁ ଶୋଭାଗଞ୍ଜି ସ୍ୟନ୍ଦନ ସାଜ
"ନଳ ପାଳ୍ପ" ଦେଉ ବେଳେଣ୍ଟ,
ଚୂଡ଼ଙ୍କ ଗୃଣିନ୍ଦ୍ର, ପ୍ରଦ୍ଧାଙ୍କ ସଙ୍କେତ । ୭ ।

କିଶୋର ଚନ୍ଦ୍ର ରାଜେନ୍ଦ୍ର ଲଳୀତ ଗୀତ ସୁରେନ୍ଦ୍ର
ଗୁଣଗ୍ରାହୀ ମଧ୍ୟେ କେନ୍ଦ୍ର କବି ଶେଖର
ରଥ ପରେ ଢେରା ପିନ୍ଧି "ରାଧାପ୍ରେମଲୀଳା" ଭଜି
ସ୍ୟନ୍ଦନ ଗଣ୍ଡ ବିରଚି ଦେଲେ ମନ୍ତ୍ର
କାବ୍ୟ କଳା ଜଗତ-ନାଥ,
ଗୁରୁଗର୍ବେ ଦର୍ପ ହାସେ ଜନ୍ମତ ମାଥ । ୮ ।

କାବ୍ୟ କଳା କୋକନଦ କବିକୁଳ ଆଶୀର୍ବାଦ
ରାଧାମୋହନ ଶୁଭଦ ସ୍ୟନ୍ଦନେ ନେତ
"ପ୍ରକମ" "ପ୍ରେମ ମଞ୍ଜୁଷା" "ପଦ୍ମମଳା" "ଭ୍ରମହୃଦ"
କାବ୍ୟ ପରେ ମଣ୍ଡକଶ୍ରୀ କରନ୍ତି ସେତ
ଗଜେନ୍ଦ୍ର ନନ୍ଦ ସୁକଣ୍ଠେ,
ରାଜେନ୍ଦ୍ର କବିତା ଗାନ କାନ୍ତ ଛନ୍ଦଟେ । ୯ ।





ଉଣେଷଣ୍ଟ ତୃଷ୍ଣା ଗାନ  ଗଗନ ପ୍ରକମ୍ପ ତାନ
ବାଣୀ ଜଗ ରସ ପାନ ଆମୀଷୁ ଡସେ
ସ୍ୟନ୍ଦନ ଅସୀମ ଯାଷା  ଚକ୍ରିଟୀ ଗରିମା ମାଷା
କଳା ଉନ୍ମୂର୍ଦ୍ଧୀ ଗାଷା ଦେଖିବା ଆଟଶ
କଭ ରଭ, ବଦ୍ୟା ଉତ୍ତନ,
ଯାଷୀ ଭୂଟେ ପୋଗଦାନ ହରିସ୍ତୁଦନ । ୧୦ ।

ଚନ୍ଦ୍ରାମଣି, ଗୋପବନ୍ଧୁ,  ରାଧାନାଥ, ଶଶି, ମଧୁ-
ବାବୁ, କଭ କୁଚାସିନ୍ଧୁ, ଏ ଯାଷା ଦେଉ
ମନ ନୟନ ସାର୍ଥକ  ରସ ରସୀଡ ଦର୍ଶକ
ଚନ୍ଦ୍ରକ ମନେ ବାଦକ ବାଇଲେ ଭେରୁ
କର୍ମି ଗଲ୍ପ ସାରୁ ଜଳଳ,
ଗ୍ରଣୀଷ୍ଣ ପଡ ପାଚେ ଚଥ ଗନ୍ଧକ । ୧୧ ।

ଜଣି, କର୍ମି ଶବାକର,  ଲକ୍ଷ୍ମୀ, ବ୍ରଜ, ହରେହର
ବାଣୀ ସେବା ନରନ୍ତର "ଅଷଣ୍ଡ ସଂଘ"
"ଅଗଣ୍ଡ ବାଣୀ" ପତ୍ରିକା  କାବ୍ୟ ଦର୍ଶନ ସମୀକ୍ଷା
ଦେଶ ସେବା ମହାଦେଷା ନବୀନ ଉଙ୍ଗ
ଶିଲ୍ପୀରତ୍ନ ରାଧାମୋହନ,
[illegible] କାରୁ କାମ କମ୍ରକେତନ । ୧୨ ।





ଶୁଣୁ ସଜରବ ଶିଙ୍ଗା   ଦେଶବ୍ରତ ମହାଦୀକ୍ଷା
ଗୌରଚନ୍ଦ୍ର ଜାତି ଟୀକା "ଜୟ ଉତ୍କଳ"
"ଜୟ ଉତ୍କଳ" ବନ୍ଧୁ   ଗୁଞ୍ଜରଲେ ଆଦ୍ୟ ମନ୍ତ୍ର
କୋଟି ଚକ୍ଷୁନୀର ବୋହ୍ନ ଧରା ଆକୁଳ
ଜଗନ୍ନାଥ ଗୀତ ବଲ୍ଲଭ,
"ସତଯାଉଅଛୁ ପ୍ରଭୁ ଆଶା ଭରସା" । ୧୩ ।

ଜ୍ୱଳନ୍ତୁ ସାହିତ୍ୟ ରଥ   ପୂର୍ଣ୍ଣକର ମନୋରଥ
ମାଜପୀ ମା ଭୋଗବତୀ ନାଗ୍ନ ଲେଖିକା
ଅନ୍ନପୂର୍ଣ୍ଣା ପରସନ୍ତୁ   ଜଦଟା ମୁକୁଟା ପଞ୍ଚ
ପୋଡ଼ା ପିଠା ସ୍ୱାଦୁଅଣ୍ଡ କାବ୍ୟ ବଥିକା
ପୂଜାରତ ଜଣ ସେବକ,
କ୍ଲାନ୍ତ, ଶ୍ରାନ୍ତ ଅତ ନମି ପଥ ପଥିକ । ୧୪ ।

ମାତୃଭୂମି ସେବା ବ୍ରତ   "ମାତୃସେବା ସଂଘ" ସ୍ରୋତ
ଟପି ବାଧା ପରବତ ମିଳେ ସ୍ପନ୍ଦନ
ପାଣ୍ଡୁଲିପି "ମା" ପତ୍ରିକା   ସାହିତ୍ୟ ସେବା ଦୀପିକା
ଯୁବ କବିଙ୍କୁ ଡାକିଲା ବାଣୀ ବନ୍ଦନ
ଗୌରଚନ୍ଦ୍ର, ବେଣୀ ମାଧବ,
ସେବାରେ ସାହିତ୍ୟ ଚନ୍ଦ୍ର ଭରା ପଲ୍ଲବ । ୧୫ ।





ରାଧାକାନ୍ତ, ଉମାପତି, ରତ୍ନା, ହଜ୍, ଗାଣ୍ଡୁ, ଚଣ୍ଡି,
ଆଚନ୍ନା, ବାଞ୍ଛା ଭକତ ଚୋଧେ ଶାରଦା
ଲଙ୍ଗରାଜ, ବନ୍ଧୁବଙ୍କ ପୂଜା ଅର୍ଘ୍ୟ ହସ୍ତାରଙ୍କ
କୁନ୍ତଳେ ଜଳା ଜୋରକ ବାଣୀ ବରଦା
ନରସିଂହ, ଶିବକୁମାର
ଦଉଡ଼ା ଟାଣନ୍ତି ମୁଖେ ପେନ୍ନା ମନ୍ତ୍ର । ୧୬ ।

ସଚ୍ଚିଦାନନ୍ଦ ନୂତନ "ସଚ୍ଚିଦାନନ୍ଦ ସମିତି"
ସଂସ୍ଥାପନେ ସମ୍ପଦ ସାହିତ୍ୟ ଧନ
ଗୋବିନ୍ଦ, କପିଳେଶ୍ବର, ବାଗ୍ମୀ ଗନ୍ଧର୍ବକୁମାର
ଘଣଳଣ୍ଡ, କବିବର ଗୋଦାବରୀଶ
ଜଳା ରଥ ଜର ପରଶେ
ନବ ତେଜେ ଅଭିନୟେ ପଥ ଦରଷେ । ୧୭ ।

ଶରଚନ୍ଦ୍ର ଶଙ୍କର ଅଭିନୟ ପାରାବାର
ଅମୃତ ଜଳା ସାଗର ମନ୍ଥି ମୌକ୍ତିକ
ରଥ ଶିରେ ଦେଲେ ଝଟ ଅଭିନବ ତନ୍ତ୍ର ରଚି
ଦରଶନ ଚନ୍ଦ୍ରସଞ୍ଚ ଗୀତ ଚନ୍ଦ୍ରିକ
ବେଦଶେ ଦେବେ ନ ଜୀବନ,
ତନ୍ତ୍ର ମାଧ୍ୟମେ ଅଧୁନା ଟାଣି ସ୍ପନ୍ଦନ । ୧୮ ।



ବାଗ୍ମୀ, ବେତ୍ତା ଦାର୍ଶନିକ     ଜ୍ୟୋତିଷ ବଇଜ୍ଞାନିକ
ଗ୍ରୁପ ସେନେଟ୍ରୀ ଶିକ୍ଷକ ଅମୀପ୍ସୁ ସ୍ରଷ୍ଟୀ
ହରିହର ପଣ୍ଡା ସତେ     ଚଳିଲେ ଅକାଳେ ରଥେ
ସେବିବାକୁ ଜଗନ୍ନାଥେ କଳାହ୍ରଜାଣ୍ଡୀ
ଗ୍ରନ୍ଥ ଉପଗ୍ରନ୍ଥ ଲେକ୍ଷି
ପ୍ରବନ୍ଧ ପ୍ରବାଦ ରଚି ଗଲେ ଉପେକ୍ଷି । ୧୯ ।

ବେଦ ଦରଶନ ସିନ୍ଧୁ     କୋବିଦ ମଣ୍ଡଳ ଇନ୍ଦୁ
ସାହିତ୍ୟ ଅମୃତ ବିନ୍ଦୁ ସୁଧାମୋହନ-
ରକପି "ଧନୁର୍ଭଙ୍ଗ",     "ସଂସ୍କୃତା" ଭବ ଲକ୍ଷଣ
ଶୋକେ ଭସାଇ ଶମନପୁର ଗମନ
ରଥଯାତ୍ରା ପଥ ଅଗ୍ରଣୀ,
"ଭାରତ ଭ୍ରମଣ" ଙ୍କର ଭବ ଅକ୍ଷୋଣୀ । ୨୦ ।

ଗଣେଶ ପ୍ରସାଦ ପାତ୍ରୀ     ଗଲେ ଆହା ଧନ୍ୟ ଗ୍ରନ୍ଥ
ବ୍ୟଙ୍ଗ କାବ୍ୟ କଳା ବାଢ଼ି କାଳ ଜରସେ
"ଅଭିବାଦ୍ଭ ଚଟ୍ଟା ଭେଳା     ତାତା ଇଗ୍ରେ ସମାଲୁଚା
ସ୍ନାରଙ୍କ କୈବର୍ତ୍ତ" ମେଳା ଗୀତ ରହସେ
ରଥ ମନ୍ଦ ଗତି ମୋନ୍ତର
ଦୁର୍ଯ୍ୟୋଧନ କାନ୍ଦୁ କାମ କମ୍ର ରଞ୍ଜିତ । ୨୧ ।

କବି ସୀତାରାମ ପଣ୍ଡ ଲେଖି "ମୋ ପ୍ରପଞ୍ଚ ମାଟି"
ତର୍କବାଦ କାବ୍ୟେ ମାତ୍ର ରସୀକ ସ୍ତବ
ଜନମ ଭୂମିର ଭକ୍ତ "ସେ ପିନା ମୋ ଜନ୍ମ ମାଟି"
ଲେଖିଥାନ୍ତି ଦେଲେ ସ୍ତୁତି ଜାକନୀ ସବ
ଦେଶେ ଦେଶେ ବସି ଜନଗଣେ
କବି ସମ୍ବର୍ଦ୍ଧନା ଗାନେ ଭଥ ଆଦର୍ଶେ । ୨୨ ।

କାଳି ସୁବନ୍ତ ରଚନେ "କାଳି ଦଳାଆ" ଭଜନେ
ମଧୁକର ବ୍ୟଙ୍ଗ ଗାନେ ଚାଣକ୍ୟ ଝର
ଭାଗବତ ନାରାୟଣ ଲେଖି "କବିତା-ଚୁମ୍ବନ"
ଇଂରାଜୀ କାବ୍ୟ ଉଚ୍ଚନ ଗୀତ ମୁଖର
ତନ୍ତ୍ର ଗ୍ରନ୍ଥ ଗାନ ବରଷ
ଉତ୍ସାରେ ସମ୍ପାଦନ ଦ୍ରୁତେ କବିତା ସଞ୍ଚ । ୨୩ ।

ହୃଦୟର ଅନ୍ତର୍ଯ୍ୟାମୀ ଯାହା ପଥ ଅନୁଗାମୀ
ରଚ୍ଛ ପରକାଶ ଭାମୀ "କଲ୍ୟାଣ କଳା-
ନ୍ଧ" ନଇସ୍ଥ ଗୀତ ମେଦେର କବିତା ସ୍ତୁତ
ସୁଚ୍ଛୁତି ଚ୍ଛଟର ଅତି କବିତାବଳୀ
ସ୍ୱନ୍ଦଇନ୍ଦ୍ର ରାଧାମୋହନ,
ପ୍ରକାଶେ ଚାଣକ୍ୟ ଭଥ ପ୍ରସାଦ ଦାନ । ୨୪ ।

ନବ କଳାକାର ଦଳ ଟାଣୁଛନ୍ତି ଖରତର
ନେକିଟୀ ଉର ଉଠ୍‌ଥିଳ କଳା କଲ୍ଲୋଳ
ଗୋରା ଦେଓ ହାରମାନ ନା'ଣ ଦାସ ଖଡ଼ାବାଣୀ
ରଥେ ଶୁଭଇ ଉଜାଣି ଲୋକ ଗହଳ
ବଡ଼ ଦାଣ୍ଡେ ଚଳେ ସ୍ୟନ୍ଦନ,
ଦୁଃଖ ଶୋକ ପାଶୋରା ଏ ସୁରଭୁବନ । ୨୫ ।

"ଶରଦ" "ବସନ୍ତ-ସ୍ୱପ୍ନ", "ରାହାସ" "ଲକ୍ଷାବଳାସ"
"ବ୍ରଜ-ବହାର" ସୁହାସ ରସ ସଞ୍ଚର
"ରାଧାପ୍ରେମ" "ରାମଲୀଳା" ଗାୟନେ ଦ୍ରବତ ଶିଳା
ରଥ ଦଉଡ଼ା ଶିକୁଳା ସମଲମ୍ବିତ
ଶଶିଧର ଟାଣେ ସଦର୍ପେ
"ଗୋପାଳ କୃଷ୍ଣ" ଲେଖକ ଶ୍ରମ ସମର୍ପେ । ୨୬ ।

ଗ.ସ୍ୱଳ ଚଷା ରାଜନ "ପ୍ରଣୟ" ସଙ୍ଗୀତ ରୋଳ
ହରିକଥା ଉର୍ଦ୍ଧ୍ୱସ୍ୱର ଗାୟନ କଣ୍ଠେ
"ରାଧା ପ୍ରେମଲୀଳା-ସ୍ୱର- ଲିପି" ବର୍ଣ୍ଣି କଳାଦର
"ସଙ୍ଗୀତ କଳାର୍ଣ୍ଣବ"ର ଗ୍ରନ୍ଥ ରଚେ
କ୍ଷେତ୍ରବାସୀ ଉଚ୍ଚ ଶିକ୍ଷକ,
ସଜୋରେ ଦଉଡ଼ା ଟାଣେ ଚଳଇ ଚକ । ୨୭ ।

ଦେଖି ସାହିତ୍ୟ ତରଙ୍ଗ "ପୁରାତନ ଗ୍ରନ୍ଥ ସଂଘ"
ନାଟ୍ୟ ଅଭିନୟ ରଙ୍ଗ ତୋଷେ ଶାରଦା
ଧାବିତ କେତେ କୋବିଦ ବାର୍ଦ୍ଧିଷ ଭେଦ ଶବଦ
ଚର୍ଷ୍ଟିଷୀ ନଭ ଶାରଦ ବନେ ବରଦା
ଗାଏ ଆଜି ନବ ମନ୍ତ୍ର,
"ରାଜେନ୍ଦ୍ର-ସଂସ୍କୃତ ପରିଷଦ" ତତ୍ପର । ୨୮ ।

ଶକ୍ରତ ଚନ୍ଦ୍ରମା ହାସ ଚର୍ଷ୍ଟିଷୀ କାନ୍ତ ପ୍ରକାଶ
ଚରବର୍ତ୍ତ ପରକାଶ ଶୋଭ୍ର କଣିକା
କାବ୍ୟ ମନ୍ଦାକିନୀ ସ୍ନାନ "ଅମୂଲ୍ୟ" ଅମୂଲ୍ୟ ଦାନ
ଅନ୍ନପୂର୍ଣ୍ଣା ସ୍ଥାନେ ଦ'ସ୍ତ, ଔପନ୍ୟାସିକା
ଷିଲ୍ଲେଚନ ହାତେ ଲହାଣ
ଦାରୁ ଖୋଦିତ ମୂରତି ମଞ୍ଜୁ ଶୋଭନ । ୨୯ ।

ସୁନ୍ଦର ଆକାଶ ସିନ୍ଧୁ ସୁନ୍ଦର ତାରକା ଇନ୍ଦୁ
ସୁନ୍ଦର ସେନେହ ବନ୍ଧୁ ଧରଣୀ ଧାମେ
ନବ ଜୀବ ରଚଣି ଧାଏଁ ଅଳି ଫୁଲେ ହସି
ଜଗ ଗାଏ ଚରଣଂସି ଉତ୍ସବ ଯାମେ
ଦେଖେ ନାହିଁ ମାୟା ଜଗତ
ଗ୍ରାହକ କାଟଇ ମୂଲ୍ୟ ହେମ ରଜତ । ୩୦ ।

ଟିପ୍ପଣୀ

୧ । ଚିଲିକାର ପୂର୍ବ ଦିଗରେ ବାଳକୁମାରୀ, ପଶ୍ଚିମରେ କୁଣ୍ଡିଲୋଣ୍ଡି ଓ ଉତ୍ତରରେ କଇଁଫୁଲିଆ ଗିରି ଶ୍ରେଣୀ ଅବସ୍ଥିତ ।

୨ । ବାହୁଦା ଓ ଘରୀ ନଦୀଦ୍ୱୟ ଶସ୍ୟ କ୍ଷେତ୍ରରେ ଜଳସେଚନ ପାଇଁ ବ୍ୟବହୃତ ହୁଏ । କଳାଘଦଳା ଗ୍ରାମ ନିକଟରେ ବାହୁଦା ନଦୀ ବନ୍ଧଦ୍ୱାରା ବହୁ ପରିମିତ ଜମି ଜଳସେଚିତ ହୋଇଥାଏ ।

୩ । ଖ୍ରୀ: ୧୭୬୧-୮୩ ଠାରୁ ରାଜତ୍ୱ କାଳରେ ୬ କବି ପଦ୍ମନାଭ ରାଜେନ୍ଦ୍ର ବହୁ ଗ୍ରନ୍ଥ ରଚନା କରିଛନ୍ତି । ବିଶେଷ ଅଳଙ୍କାର ଶାସ୍ତ୍ର ମନ୍ଥନ କରି ସେ ଯେଉଁ "କବି କଳ୍ପଦ୍ରୁମ" ନାମକ ଗ୍ରନ୍ଥ ଲେଖିଛନ୍ତି ତାହା ଗୋଟିଏ ଅନବଦ୍ୟ ରଚନା । ଗଜପତି ଦରବାରରୁ ସେ "ରାଜେନ୍ଦ୍ର" ପଦବୀ ପାଇଥିଲେ ।

୪ । ୬ ରଘୁନାଥ ବିଶ୍ୱାସରାୟ, କବି ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ରାଜସଭାର ଷଡ଼ଦର୍ଶନବେତ୍ତା ପଣ୍ଡିତ ।

୫ । ୬ ନରେନ୍ଦ୍ର ରାୟ ଓ ୬ ଲୋକନାଥ ଦାସ ଶ୍ରେଷ୍ଠ ଭଞ୍ଜ ସାହିତ୍ୟ ଟୀକାକାର ରୂପେ ଖ୍ୟାତ । ୬ ଲୋକନାଥ ଦାସଙ୍କ ଭଞ୍ଜ ସାହିତ୍ୟ ଟୀକା ଅଦ୍ୟାପି ଉତ୍କଳରେ ଆଦର ଲାଭ କରୁଛି ।

୬ । କବି ପରିଛ ପଟ୍ଟନାୟକ ଲିପିଚିତ୍ର ଦ୍ୱାରା ଗୋଟିଏ ଗୋଟିଏ ଗ୍ରନ୍ଥ ରଚନା କରନ୍ତି ।

ଲକ୍ଷ୍ମଣ—୬ ଲକ୍ଷ୍ମଣ ରୂପକାର ଦେବ ।

କବିଗଣ—ବେଙ୍କଟେଶ ଦେଓ, ଚନ୍ଦ୍ରଶେଖର କୁଣ୍ଡିଗ୍ରୀ, ବନ୍ଧୁର ଦାସ, କାଶିନାଥ ରାୟଗୁରୁ, ଜଗୁଲ ଖଣ୍ଡିଆ, ନିତ୍ୟାନନ୍ଦ ଦାସ, ପଦ୍ମନ ଦାସ, ଗୁରୁ ଦାସ, ବିଶ୍ୱନାଥ ରାୟଗୁରୁ, କେଶବ ଦାସ, ନାରାୟଣ ଦାସ, ରସାନନ୍ଦ ଦାସ, ବ୍ରଜରାଜ, ଗୋପିନାଥ ଖାଟରାଜ ଓ ରାଜା ବିଶ୍ୱମ୍ଭର ରାଜେନ୍ଦ୍ର—ସ୍ୱର୍ଗତ କବି ସମୂହଙ୍କ ସମ୍ମିଳିତ ରଚନା ।

୮ । ବିଶ୍ୱମ୍ଭର ରାଜେନ୍ଦ୍ର ସ୍ୱାମୀଙ୍କ ପୁଅ କିଶୋରଚନ୍ଦ୍ରଙ୍କ ନାମରେ ଭଣିତା କରି "ରାଧାପ୍ରେମ ଲୀଳା" ରଚନା କରିଯାଇଛନ୍ତି । "ବିଦଗ୍ଧ ମାଧବ ନାଟକ" କିଶୋର ଚନ୍ଦ୍ରଙ୍କର ମୌଳିକ ରଚନା । ଏହା ଉତ୍କଳ ନାଟ୍ୟ ସାହିତ୍ୟର ଦ୍ୱିତୀୟ ରଚନା ।

୯ । ରାଧାମୋହନ ରାଜେନ୍ଦ୍ର—ଶ୍ରୀ ପ୍ରତାପ ନାଟକ, ପାଞ୍ଚାଳୀ-ଚକ୍ଷୁ'ପହରଣ, ଚନ୍ଦ୍ରମଳା ସହ ଗମନ, ପାଣ୍ଡବ ବନବାସ, ପ୍ରକୃତ ପ୍ରଣୟ, ପ୍ରକୃତ ରହସ୍ୟ, ପ୍ରେମ ତରଙ୍ଗ ନାଟକାବଳୀ । ପ୍ରକୃତ ବର୍ଣ୍ଣନା, ପ୍ରେମ ମଞ୍ଜୁଷା କାବ୍ୟ ରଚନା ପ୍ରକାଶ ପାଇଛି । ପରମାର୍ଥ-ପଯ୍ୟୋଧୀ ଓ ଯୋଗବାଶିଷ୍ଠ ରାମାୟଣ ଅପ୍ରକାଶିତ ବିରାଟ ଓ ମୂଲ୍ୟବାନ ଗ୍ରନ୍ଥ । ୭ ଗଜେନ୍ଦ୍ର ସାମନ୍ତଙ୍କ କଣ୍ଠରେ ରାଧାମୋହନ ରାଜେନ୍ଦ୍ର କବିତା ଗାନ ଅତି ମନମୁଗ୍ଧକର ଶୁଣାଯାଏ ।

୧୦ ଓ ୧୧ । ଗୋଟା ମଙ୍କ ଚଢ଼ର ଛେଲିକୁ ଭାଇଦାରେ ବାହାର କରି ସେହି ଛେଲି ଉପରେ ବାଉଁଶ କାଠି ଦ୍ୱାରା ଆଘାତ କଲେ ମୃଦଙ୍ଗର ଧ୍ୱନି ପରି ଶବ୍ଦ ନିର୍ଗତ ହୁଏ । ଏହାକୁ ଡ଼ୁମ୍ପା ବାଜଣା କହନ୍ତି । ରଣତଣ୍ଟ୍ ଏହି ଡ଼ୁମ୍ପା ଗାନର ଶ୍ରେଷ୍ଠ କଳାକାର ରୂପେ ପରିଚିତ ।

କବିସୂର୍ଯ୍ୟ ବଳଦେବ ରଥ, ଯାଜମଣି ବିଦ୍ୟାରତ୍ନ, ଚିନ୍ତାମଣି ମହାନ୍ତି, ଲୋକକବି ଗୋପବନ୍ଧୁ, କବିବର ରାଧାନାଥ, ଶଶିଭୂଷଣ ରଥ, କୁଳବୃଦ୍ଧ ମଧୁ ବାରିଷ୍ଟର, କବି କୃପାସିନ୍ଧୁ ହୋତା, ସୁରଙ୍ଗୀ ରାଜା ପାଳାଦ୍ରୀ ହରିଶ୍ଚନ୍ଦନ ଚକ୍ରିଟୀର ତାତକାଳୀନ ରାଜାଙ୍କ ଅତିଥି ହୋଇ ସାହିତ୍ୟ ଓ କଳାର ଆଲୋଚନା କରିଯାଇଛନ୍ତି ।

୧୨ । ଶ୍ରୀ ଭରତ ବେହେରା ବି. ଏ., ବି. ଇଡ୍. ପ୍ରଧାନ ଶିକ୍ଷକ, କର୍ମି ଦିବାକର ପଟ୍ଟନାୟକ ଏମ୍. ଏଲ୍. ଏ., ୰ ଲକ୍ଷ୍ମୀଚରଣ ଦାସ, ଶ୍ରୀ ବ୍ରଜସୁନ୍ଦର ପାତ୍ରୀ, ୰ ହରିହର ଚଣ୍ଡୀଙ୍କ ଉଦ୍ୟମରେ ଅଖଣ୍ଡ ସଂଘ ପ୍ରତିଷ୍ଠା ହୋଇଥିଲା ଓ ଏହି ସଂଘର ମୁଖପତ୍ର ରୂପେ "ଅଖଣ୍ଡ ବାଣୀ" ପାଣ୍ଡୁଲିପି ପତ୍ରିକା ପ୍ରକାଶ ପାଉଥିଲା । ଏହାର ନିଦର୍ଶନ ସ୍ୱରୂପ ବର୍ତ୍ତମାନ "ଅଖଣ୍ଡ ପାଠାଗାର" ସରକାରୀ ସାହାଯ୍ୟରେ ତିଷ୍ଠି ରହିଛି ।

ଶିଳ୍ପୀରତ୍ନ ରାଧାମୋହନ—ଗଜଦନ୍ତ କାରିଗର । ସେ ଗୋଟିଏ ଧାନ୍ୟ ପରିମିତ ହାତୀ ଦାନ୍ତର ଅଂଶ ଉପରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଖୋଦିତ କରିଅଛନ୍ତି । ତାହା ମାଇକ୍ରୋସ୍କୋପ୍ ସାହାଯ୍ୟରେ ଦେଖିବାକୁ ହୁଏ ।

୧୩ । ୰ ରାଜା ଗୌରଚନ୍ଦ୍ର ଉତ୍କଳ ଦେଶ ଗଠନର ଜଣେ ଶ୍ରେଷ୍ଠ କର୍ମି । ସେ ରୋଗ ଶଯ୍ୟାରେ ଶୋଇ ଯେତେବେଳେ ଶୁଣି ପାରିଲେ ଯେ, ଉତ୍କଳ ଦେଶ ଗଠନ ହୋଇଯାଉଛି ଓ ପାରଳାଖେମୁଣ୍ଡି ଓଡ଼ିଶାରେ ମିଶି ଯାଉଛି, ଯେତେବେଳେ ହଠାତ୍ ପଲଙ୍କ ଉପରେ ବସି "ଜୟ ଉତ୍କଳ ମାତାର ଜୟ, ଉତ୍କଳ ଜନନୀର ଜୟ" କହୁ କହୁ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା ।

ପାରଳାଖେମୁଣ୍ଡିର ପଣ୍ଡିତ ଜଗନ୍ନାଥ ଦାସ ଚକ୍ରବର୍ତ୍ତୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ଗୌରଚନ୍ଦ୍ରଙ୍କର ମୃତ୍ୟୁରେ ଶୋକାଭିଭୂତ ହୋଇ ସେ ଯେଉଁ ଗୀତ ଲେଖି ଯାଇଛନ୍ତି "ବିପଦ ସାଗରେ ବୁଡ଼ିଛୁ ତରସ, ସରିଯାଇଛୁ ଭୁଖ ଆଶା ଭରସା" ଅଦ୍ୟାପି ଗୌରଚନ୍ଦ୍ରଙ୍କ ଶ୍ରାଦ୍ଧବାସର ଉପଲକ୍ଷେ ତାଙ୍କର ପ୍ରତିକୃତି ସହ ନଗର ପରିକ୍ରମା କଲା ବେଳେ ଚକ୍ରବର୍ତ୍ତୀ

ଜନସାଧାରଣ ତାହା ପାନ କରନ୍ତ । ଶୀଇଟିର ଶବ ଓ ଲଷା ବର୍ତ୍ତ ମାନ ତୂର୍ଣ୍ଣୀ ।

୧୪ । ନାଷ୍ଟ କବ ଅନ୍ନପୂର୍ଣ୍ଣା ପଟ୍ଟନାୟକଙ୍କ ଜନ୍ମ ଶର୍ଚ୍ଛିଠୀରେ ।

୧୫ ଓ ୧୬ । ଶ୍ରୀ ସୁଧାକାନ୍ତ ଦାସ, ବି. ଏ., ବି. ଇଡ୍. ପ୍ରଧାନ ଶିକ୍ଷକ, ଶ୍ରୀ ଗିରଗା ଭ୍ରମାପତ ସମବାୟ ସବ୍-ଆସିଷ୍ଟାଣ୍ଟ ରେଜଷ୍ଟ୍ରର, ଶ୍ରୀ ବଞ୍ଚାନାଇକୁଲ୍ ଟିକ ରେଳପଥ କର୍ମଚାରୀ, ଶ୍ରୀ ରଜଗୋପାଳ ସୁବୁଦ୍ଧି ବି. ଏ, ଡ଼. ଇଡ଼ ପ୍ରଧାନ ଶିକ୍ଷକ, ଶ୍ରୀ ରାଷ୍ଟ୍ରିଆ ରଞ୍ଜନ ଜ୍ଞ: ପ୍ର: ବଦ୍ୟାଳୟର କୃତ ପ୍ରଧାନ ଶିକ୍ଷକ, କବ ସୀତାରାମ ପତି, ଶ୍ରୀ ଆପନ୍ନା ମହାପାତ୍ର ଲେଖକ ଓ ଚତ୍ରକର, ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ—ସରକାରୀ କର୍ମଚାରୀ, ଶ୍ରୀ ଲକ୍ଷ୍ମୀଧର ପଣ୍ଡା—ଜ୍ଞ: ପ୍ରା· ବଦ୍ୟାଳୟର ରାଷ୍ଟ୍ରପତ ପୁରସ୍କାର ପ୍ରାପ୍ତ କୃତ ପ୍ରଧାନ ଶିକ୍ଷକ, ଶ୍ରୀ ନରସିଂହ ପଣ୍ଡା, ଆଇ. ଏସ୍. ଏ· ଏସ୍ ସରକାରୀ ଅର୍ଥ ବଭାଗର ଉଚ୍ଚ କର୍ମଚାରୀ ଓ ଶ୍ରୀ ଶିବକୁମାର ପଣ୍ଡା, ଏମ୍. ଏ. ଅଧ୍ୟକ୍ଷଙ୍କ ଉଦ୍ୟମରେ "ମାତୃ ସେବା ସଂଘ" ଗଠନ କରାଯାଇ ଥିଲା । ଏହି ସଂଘର ସାହିତ୍ୟ ପତ୍ରିକା "ମା" ପାଣ୍ଡୁଲିପି ମାସିକ ପତ୍ରିକା ପ୍ରକାଶନ ଓ ୧୯୪୨ ଦୁର୍ଭିକ୍ଷ ବେଳେ ଅନ୍ନଛତ୍ର ବ୍ୟବସ୍ଥା ଗୋଟିଏ ଗୋଟିଏ ଉଲ୍ଲେଖଯୋଗ୍ୟ ଦେଶହିତ କାମ "ମାତୃଭୂମି" ସମ୍ପାଦକ ଶ୍ରୀ ଗୌରଚନ୍ଦ୍ର ରାଉତ ଓ ଅଧ୍ୟକ୍ଷ ବେଣୀମାଧବ ପାଢ଼ୀ ।

୧୭ । ରାଜକବି ରାଧାମୋହନଙ୍କ ଦ୍ୱାରା ପ୍ରତିଷ୍ଠିତ "ସଚ୍ଚିଦାନନ୍ଦ ସମିତି" ରାଜା ସଚ୍ଚିଦାନନ୍ଦ ହରିଚନ୍ଦନଙ୍କ ଦ୍ୱାରା ପୁନଃଉଜ୍ଜୀବିତ କରାଯାଇ ଥିଲା । ଏହାର ବାର୍ଷିକୋତ୍ସବର ପୁରୋଧା ରୂପେ ବ୍ରହ୍ମପୁର ସବ୍ କଲେକ୍ଟର ଓ ସାହିତ୍ୟିକ ଗୋବିନ୍ଦ ତ୍ରିପାଠୀ, ଅଧ୍ୟକ୍ଷ କପିଳେଶ୍ୱର ଦାସ, ଏମ୍. ଏ., ଅଧ୍ୟାପକ ଗୌରୀକୁମାର

ବୃନ୍ଦା, ପଣ୍ଡିତ ମାଳଭଣ୍ଟ ଦାସ ଓ କବିବର ଗୋଦାବରୀଶ ମିଶ୍ର ଯେ ଉତ୍କଳ ସାହିତ୍ୟ ଓ ସଂସ୍କୃତିର ଆଲୋଚନା କରିଥିଲେ । ଚିକିଟୀର ବାଳିକା ଉଚ୍ଚ ଓ ମଧ୍ୟ ଇଂରେଜୀ ବିଦ୍ୟାଳୟ, ରାଜା ସଚ୍ଚିଦାନନ୍ଦଙ୍କ ଜନନୀ "ରାଣୀ ରାଜଲକ୍ଷ୍ମୀ"ଙ୍କ କୀର୍ତ୍ତି ଓ ଚିକିଟୀ ବଡ଼ ଡାକ୍ତରଖାନାଠାରୁ ଆରମ୍ଭ କରି ଗ୍ରନ୍ଥ ତାଲିମ କେନ୍ଦ୍ର ପୁଣି ଯେତେକ ସରକାରୀ କାର୍ଯ୍ୟାଳୟ ଓ ଅନୁଷ୍ଠାନ ଦେଖାଯାଏ ସେ ସବୁ ମୂଳରେ ରାଜା ସଚ୍ଚିଦାନନ୍ଦଙ୍କ ଦାନ ଓ ପ୍ରଚେଷ୍ଟା ବିଦ୍ୟମାନ ।

୧୮ । ଶ୍ରୀ ଶରତ୍‌ଚନ୍ଦ୍ର ଦେବ—ବିଳାତ ଫେରନ୍ତା ତହସିଲର, ଖଲ୍ଲିକୋଟ କଲେଜର ଅବସର ପ୍ରାପ୍ତ ଅଧ୍ୟକ୍ଷ ଓ ରାଜା ଗୌରଚନ୍ଦ୍ରଙ୍କ କନିଷ୍ଠ ଭ୍ରାତା ।

୨୦ । ପଣ୍ଡିତ ରାଧାମୋହନ ବକ୍ସି କୃତ—"ଧନୁର୍ଭଙ୍ଗ" ଓ "ସପୁକ୍ତା" ନାଟକ, "ଭାରତ ଚିନ୍ତାମଣି" ବିରାଟ ଏନ୍‌ସାଇକ୍ଲୋ-ପିଡ଼ିଆ ଅଦ୍ୟାପି ଅପ୍ରକାଶିତ । ତାହାଙ୍କର କୃତୀ ସନ୍ତାନ ଅଧ୍ୟକ୍ଷ ଶିବକୁମାର ପଣ୍ଡା ଓ ଅଧ୍ୟାପକ ଦୟାନିଧି ପଣ୍ଡା ।

୨୧ । ୰ ଦୁର୍ଯ୍ୟୋଧନ ମାହାଣା ରତ୍ନ ଗଜଦନ୍ତ କାରିଗର ।

୨୪ । ଶ୍ରୀ ଅନ୍ତର୍ଯ୍ୟାମୀ ପତିଙ୍କ ଲିଖିତ "କଲ୍ୟାଣ କଳାନିଧି" ନୈଷଧ ଚରିତ ସଙ୍କଳନ ରାଧାମୋହନଙ୍କ ଦ୍ୱାରା ପ୍ରକାଶିତ ।

୨୫ । ୰ ଗୋରା ଚୌଧୁରୀଙ୍କ ହାରମୋନିୟମ ବାଦନର ମଧୁର ନିନାଦରେ ଥରେ ଗୋଟିଏ ବିଷଧର ସର୍ପ ନାଗେଶ୍ୱର ଭ୍ରମରେ ନିକଟକୁ ବୁଲି ଆସିଥିଲା । ୰ ନାରାୟଣ ଦାସଙ୍କ ବୀଣା ବାଦନ ଅତି ଚମତ୍କାର ।

୨୬ । ଶ୍ରୀ ଶଶିଧର ପଟ୍ଟନାୟକ ଏମ୍. ଏ "ଗୋପାଳ କୃଷ୍ଣ" ନାଟକ ଲେଖକ ଓ ଜଣେ ସାମାଜିକ ଶିକ୍ଷା ସଂଗଠକ ।

୨୭ । ଶ୍ରୀ କ୍ଷେତ୍ରବାସୀ ଦାସ—ରାଧାପ୍ରେମ ଲୀଳା ପ୍ରଭୃତି ଲେଖକ ଓ ଅପ୍ରକାଶିତ ସଙ୍ଗୀତ ଗ୍ରନ୍ଥ "ସଙ୍ଗୀତ କଳାର୍ଣ୍ଣବ" ରଚୟିତା । ତାହାଙ୍କର ଲିଖିତ ଏହି ଗ୍ରନ୍ଥ ଓଡ଼ିଶା ମ୍ୟୁଜିୟମ ଦ୍ୱାରା ଉଚ୍ଚ ପ୍ରଶଂସିତ ।

୨୮ । "ପୁରାତନ ଛାତ୍ରସଂଘ" ଦ୍ୱାରା ମାଣିକଯୋଡ଼, ଲକ୍ଷଣ୍ଣାରା, ଭାଗ ନର୍ତ୍ତକୀ, ବନ୍ଦୀ ଜଗବନ୍ଧୁ, ଚନ୍ଦ୍ରପୀଠୁଣ୍ଡ, ଲୁହା ଶିକୁଳି, ବାଉଁଶ ଝିଅ ଓ ଗାଇ ଜଉଡ଼ ଅଭିନୀତ ହୋଇଥିଲା । ଏହି ସଂଘ ଦ୍ୱାରା ପ୍ରତି ବର୍ଷ ଗୋଟିଏ ବା ଦୁଇଟି ନାଟ୍ୟ ଅବଦାନ ପରିବେଷଣ କରାଯାଉଛି । ଶ୍ରୀ ବିନାଥ ମହାନ୍ତି, ଶ୍ରୀ ନରସିଂହ ରାଉଳ, ଶ୍ରୀ ସୀତାକାନ୍ତ ମହାପାତ୍ର, ଶ୍ରୀ ନରେନ୍ଦ୍ର ବେହେରା, ଶ୍ରୀ ଉମାକାନ୍ତ ବେହେରା ଏହି ଅନୁଷ୍ଠାନର ଉତ୍ସାହୀ ଯୁବକ ଅଭିନେତା ରୂପେ ଖ୍ୟାତ । ଏହି ସଂଘର ସଭାପତି ଶ୍ରୀ ଲକ୍ଷ୍ମୀ-ନରସିଂହ ପଟ୍ଟନାୟକ ଓ ସମ୍ପାଦକ ଶ୍ରୀ ରାମଚନ୍ଦ୍ର ପଣ୍ଡା ଅଟନ୍ତି । ଏହି ବର୍ଷର ମଞ୍ଚସ୍ଥ ତ୍ରୟୋଦଶୀ ନାଟକ "କୁରୁକ୍ଷେତ୍ର" ନିକଟରେ ଅଭିନୀତ ହେବ ।

୨୯ । ଶ୍ରୀମତୀ ଅମୂଲ୍ୟ ପଟ୍ଟନାୟକ—ଶ୍ରୀ ରମେଶଚନ୍ଦ୍ର ପଟ୍ଟନାୟକଙ୍କ ସହଧର୍ମିଣୀ । ସେ କେତେ ଗୋଟି ଉପନ୍ୟାସର ଲେଖିକା । ଶ୍ରୀ ବିଲୋଚନ ମାହାଣା—ଉଚ୍ଚ ବିଦ୍ୟାଳୟର ଚିତ୍ର ଶିକ୍ଷକ । ସେ କାଷ୍ଠ ଖୋଦିତ ଜନ୍‌ସନଙ୍କ ପ୍ରତିମୂର୍ତ୍ତି ପାଇଁ ସ୍ୱୟଂ ଜନ୍‌ସନଙ୍କଠାରୁ ପ୍ରଶଂସା ପତ୍ର ପାଇଛନ୍ତି । ଗାନ୍ଧିଜୀ, ନେହେରୁ, ଗୋପବନ୍ଧୁ, ବିନୋବା ଇତ୍ୟାଦି କାଷ୍ଠ ଖୋଦିତ ପ୍ରତିମୂର୍ତ୍ତି ତାହାଙ୍କର ଅନବଦ୍ୟ ଶିଳ୍ପ କଳାର ଜ୍ୱଳନ୍ତ ନିଦର୍ଶନ ।



## ମାତୃ ସେବା ଗ୍ରନ୍ଥମାଳାର ଅନ୍ୟାନ୍ୟ ଅବଦାନ

| | | |
|---|---|---|
| ଝଙ୍କୃତ (କବିତା) | ଶ୍ରୀ ନରସିଂହ ଦେଓ | ଟ ୦-୬୨ |
| ବେଦନା (କବିତା) | ଶ୍ରୀ ନରସିଂହ ଦେଓ | ଟ ୦-୫୦ |
| କବିତା ପ୍ରସୂନ (କବିତା) | ଡାକ୍ତର ନାରାୟଣ ପଣ୍ଡା | ଟ ୦-୧୨ |
| ସାତଦରିଆ (ଗଳ୍ପ) | ଶ୍ରୀ ନରସିଂହ ଦେଓ | ଟ ୦-୬୨ |
| ଶେଷବ୍ରତ (ଉପନ୍ୟାସ) | ଶ୍ରୀ ନରସିଂହ ଦେଓ | ଟ ୧-୦୦ |

(ପ୍ରକାଶକ—**ଓଡ଼ିଶା ବୁକ୍ ଏମ୍ପୋରିୟମ୍**, କଟକ)

| | | |
|---|---|---|
| କୋଟି ନୟନର ତଳେ (ଉପନ୍ୟାସ) | ଶ୍ରୀ ନରସିଂହ ଦେଓ | ଟ ୧-୬୨ |

(ପ୍ରକାଶକ—**ସାରସ୍ୱତ ଭଣ୍ଡାର**, କଟକ)

| | | |
|---|---|---|
| ଇଂରେଜର ଷଡ଼ଯନ୍ତ୍ର (ଡିଟେକ୍ଟିଭ୍) | ଶ୍ରୀ ନରସିଂହ ଦେଓ | ଟ ୧-୦୦ |
| ଆତ୍ମଘାତୀ (ଉପନ୍ୟାସ) | ,, | ଟ ୨-୦୦ |

(ପ୍ରକାଶକ—**ଓଡ଼ିଶା ବୁକ୍ ହାଉସ**, ବ୍ରହ୍ମପୁର)

### —ମଞ୍ଚସ୍ଥ ପ୍ରତ୍ୟାଶୀ ନାଟକ—

**କୁରୁକ୍ଷେତ୍ର**
(ସାମାଜିକ)

**ମଧୁଚନ୍ଦ୍ରିକା**
(ସାମାଜିକ)

### ଅପ୍ରକାଶିତ ଉପନ୍ୟାସ

**ନିଶାଚର**

ମାତୃସେବା ଗ୍ରନ୍ଥମାଳାର

୧୦ମ ଅବଦାନ

# କଣ ?



ଏହାର ଉତ୍ତର ଆପଣଙ୍କର

ଦୟା ଓ ଦାକ୍ଷିଣ୍ୟ

ସାହାଯ୍ୟ ଓ ସହାନୁଭୂତି